# ଲାଟ ଦର୍ଶନ

ପଣ୍ଡିତ ଗୋବିନ୍ଦ ରଥ



# ଲାଟ ଦର୍ଶନ

(ଓଡ଼ିଆ ସାହିତ୍ୟର ଏକ ଦୁର୍ଲ୍ଲଭ ଅଧ୍ୟାୟ)

ପଣ୍ଡିତ ଗୋବିନ୍ଦ ରଥ

(‘କଳିଙ୍ଗ ଗବେଷଣା ଏକାଡେମୀ’ ପକ୍ଷରୁ ସଂଗୃହୀତ ଓ ସମ୍ପାଦିତ)

*ସମ୍ପାଦନା*

ସ୍ମରଣ କୁମାର ନାୟକ

*ପ୍ରକାଶକ :*

ଉର୍ମିଳା ପବ୍ଲିକେଶନ

ବିନୋଦ ବିହାରୀ, କଟକ-୨

ଲାଟ ଦର୍ଶନ
(କଳିଙ୍ଗ ଗବେଷଣା ଏକାଡେମୀ ପକ୍ଷରୁ ସଂଗୃହୀତ ଓ ସମ୍ପାଦିତ)

*ସମ୍ପାଦନା :*
ସ୍ମରଣ କୁମାର ନାୟକ

*ପ୍ରକାଶକ :*
ଊର୍ମିଳା ପବ୍ଲିକେଶନ
ବିନୋଦ ବିହାରୀ, କଟକ - ୭୫୩୦୦୨

ପ୍ରାପ୍ତିସ୍ଥାନ : ଭାସ୍କର ଟ୍ରେଡର୍ସ
ବିନୋଦ ବିହାରୀ, କଟକ - ୭୫୩୦୦୨

*କମ୍ପ୍ୟୁଟର ସହାୟତା :*
ମା' ଶାରଳା ଡି.ଟି.ପି., କଟକ-୧୪

ପ୍ରଥମ ପ୍ରକାଶ : ୨୦୦୫

ମୂଲ୍ୟ : ଟ.୧୬/-

**LAT DARSHANA**
(Collected and Edited on the behalf of
Kalinga Research Academy)

*Editor :*
**Smaran Kumar Nayak**

*Publisher :*
**Urmila Publication**
Binod Behari, Cuttack-753002

*Available at :*
**Vaskar Traders**
Binod Behari, Cuttack-753002

*Computer Assistance :*
Maa Sarala D.T.P. Ctc.-14

**Price : Rs. 16/-**
**ISBN 81-86080-04-X**

**First Edition - 2005**

## ଏ ପ୍ରକାଶନ ସଂପର୍କରେ . . . . . ।

ପଣ୍ଡିତ ଗୋବିନ୍ଦ ରଥ ଓଡ଼ିଆ ସାହିତ୍ୟର ଇତିହାସରେ ଏକ ବିସ୍ମୃତ ନାମ । ବିପ୍ଳବୀ ନାମରେ ପରିଚିତ ପଣ୍ଡିତ ରଥଙ୍କ ସାରସ୍ୱତକୃତିର ସଂକଳନ ଏଯାବତ୍‌ ସମ୍ଭବପର ହୋଇନାହିଁ । 'କଳିଙ୍ଗ ଗବେଷଣା ଏକାଡେମୀ' ପକ୍ଷରୁ ଏହା ସଂକଳନ କରାଯିବା ନିମନ୍ତେ ସଂଗହ କରାଯାଉଛି ।

ପ୍ରାୟ ଅଧିକାଂଶ ଗବେଷକଙ୍କର ଧାରଣା ଥିଲା ଯେ ଗୋବିନ୍ଦ ରଥଙ୍କର 'ଲାଟ ଦର୍ଶନ' ନାମରେ ଗୋଟିଏ ପୁସ୍ତକ ରହିଛି । ମାତ୍ର ପ୍ରଫେସର ଡକ୍ଟର ଗଗନେନ୍ଦ୍ରନାଥ ଦାଶ ('କଳିଙ୍ଗ ଗବେଷଣା ଏକାଡେମୀ'ର ଗବେଷଣା ନିର୍ଦ୍ଦେଶକ) ମୋତେ ସୂଚନା ଦେଇଥିଲେ ଯେ 'ଉତ୍କଳଦୀପିକା'ର ପୃଷ୍ଠାରେ ଆଉ ଦୁଇଟି 'ଲାଟ ଦର୍ଶନ' ରହିଯାଇଛି । ସେଗୁଡ଼ିକୁ ସଂଗ୍ରହ କର ।

ତାହା ସଂଗ୍ରହ କରାଗଲା । ଏକାଡେମୀ ପକ୍ଷରୁ ପ୍ରକାଶନର ଦାୟିତ୍ୱ 'ଉର୍ମିଳା ପବ୍ଲିକେଶନ'ର ସତ୍ତ୍ୱାଧିକାରିଣୀ ପ୍ରୀତି ଭଗତ ଗ୍ରହଣ କଲେ । ସେ ମୋର ବନ୍ଧୁଙ୍କର ଭଗିନୀ । ଏହି ପ୍ରକାଶନ ନିମନ୍ତେ ତାଙ୍କର ଆଗ୍ରହ ବାସ୍ତବିକ ମୋତେ ଆଶ୍ଚର୍ଯ୍ୟ କରିଥିଲା । କିଛିଦିନ ପାଇଁ କଟକ ବାହାରେ ମୋତେ ରହିବାକୁ ପଡ଼ିଥିଲା । ତେଣୁ ଲାଟମାନଙ୍କର ଓଡ଼ିଶା ଆଗମନର ସୂଚନା ଯାହା ପ୍ରାଚୀନ ପତ୍ର ପତ୍ରିକାରୁ ସଂଗ୍ରହ କରାଯାଇଛି ସେସବୁ 'ଉତ୍କଳ ସାହିତ୍ୟ ସମାଜ'ର ଗ୍ରନ୍ଥାଗାର ତତ୍ତ୍ୱାବଧାରିକା କୁମାରୀ ଲକ୍ଷ୍ମୀପ୍ରିୟା ଜେନାଙ୍କର ଉଦାରତାରୁ କୁମାରୀ ବିଶାଖା ସାହୁଙ୍କ ଦ୍ୱାରା ସଂଗ୍ରହ କରାଯାଇଛି । ଏହି ଅବସରରେ କୁମାରୀ ଜେନା ଓ କୁମାରୀ ସାହୁଙ୍କୁ ଅଜସ୍ର ଧନ୍ୟବାଦ । କୀଟଦ୍ରଂଷ୍ଟପ୍ରାୟ ପତ୍ରିକାଗୁଡ଼ିକୁ ବ୍ୟବହାର କରିବାକୁ ସୁଯୋଗ ଦେଇଥିବାରୁ 'ଉତ୍କଳ ସାହିତ୍ୟ ସମାଜ'ର ସମ୍ପାଦକ ଶ୍ରୀଯୁକ୍ତ ସଞ୍ଚିଦ୍ ପଟ୍ଟନାୟକଙ୍କୁ ମଧ୍ୟ ଧନ୍ୟବାଦ । ପୁସ୍ତକଟି ଗବେଷକମାନଙ୍କ କାର୍ଯ୍ୟରେ ଆସିଲେ ମୋର ଶ୍ରମ ସାର୍ଥକ ହେଲାବୋଲି ଜାଣିବି ।

କଟକ
୧୫.୦୧.୦୫

**ସ୍ମରଣ କୁମାର ନାୟକ**

# ଲାଟ ଦର୍ଶନ

## ପ୍ରଥମ ଅଧ୍ୟାୟ ।

### ସାଗର, ସମୀରଣ ଓ ଜୀମୂତ ପ୍ରତି ନିବେଦନ ।

୧

କହୁଛି ବିନୟେ ଶୁଣ ହେ ସାଗର,
ଆସୁଛନ୍ତି ଆମ୍ଭ ଲାଟ ବୀରବର,
ସୁଶାନ୍ତପ୍ରକୃତି କରି କଳେବର,
ଅବାଧେ ଚାଳିବ ଅର୍ଣ୍ଣବତରୀ ।
ଜଗତର ପ୍ରାଣ ଆହେ ସମୀରଣ,
ତବ ପଦେ ଆଜି ଏହି ନିବେଦନ,
ପ୍ରବଳ ପ୍ରତାପ ଛାଡ଼ି କେତେ କ୍ଷଣ,
ଧୀରେ ତରୀ ନେବ ତୀରକୁ ଧରି ।

୨

ଶୁଣ ହେ ଜୀମୂତ ହୁଅ ଅନୁକୂଳ,
ଏ ସମୟେ ଜଳ ନୁହେ ଅପ୍ରତୁଳ,
ରାଶି ରାଶି ଜଳ କରି ଏକ ଠୁଳ,
ନ ଦିଅ ଯାତନା ଆମ୍ଭ ଲାଟଙ୍କୁ ।
କର ପୁଟେ କରେଁ ତୋରେ ନିବେଦନ,
ଛାୟା ଦାନ କରି କରେ ବିଚରଣ,
କର ସୁଖେ ଘେନ ପ୍ରଶଂସା ବଚନ,
ଆଣି ଏ କଟକେ ଲାଟବୀରଙ୍କୁ ।

—o—

## ଦ୍ୱିତୀୟ ଅଧ୍ୟାୟ । – କଟକ-ପ୍ରବେଶ ।

୩

ଅଗ୍ନି ବୋଟ ଧୂମ ଉଠୁଛି ଅଶେଷ,
ଦେଖ ଲାଟ ବୀର ନିକଟେ ପ୍ରବେଶ,
ଉଚ୍ଚ କର୍ମଚାରୀ କି ଭାବ ବିଶେଷ,
ଆସି ତୀରେ କର ଅଭିବାଦନ ।
ରାଜ ଦରଶନେ ରାଜାଙ୍କ ସମ୍ମାନ,
ଦେଇ ଭକ୍ତି ଭରେ ରଖ ନିଜ ମାନ,
ଉଚ୍ଚ ରବେ କରି ତାଙ୍କ ଯଶ ଗାନ,
ଦୂରେ ରହି ଶିର କର ନମନ ।

୪

ଆସ ହେ ଉତ୍କଳ ନୃପତି ସମାଜ,
ନାନା ଆଭରଣେ କରି ଅଙ୍ଗ ସାଜ,
ଲାଟ ମହୋଦୟେ ଭେଟ ଯାଇ ଆଜ,
ରାଜ ଧର୍ମେ ରାଜ ସମ୍ମାନ ଧରି ।
ନିଜ ନିଜ ରାଜ୍ୟ କୁଶଳ ସମ୍ବାଦ,
ଜଣାଇ ଲାଟଙ୍କୁ କର ହେ ଆହ୍ଲାଦ,
ଗୋପନ ନ କରି ପ୍ରଜାଙ୍କ ବିଷାଦ,
ମୁକ୍ତ କଣ୍ଠେ କହ ବିଶେଷ କରି ।

୫

ନଦୀସ୍ରୋତ ପରି ଆହେ ପ୍ରଜାଗଣ,
ଯୋବରା ଘାଟକୁ କରି ସଞ୍ଚରଣ,
ଲାଟ ଟମସନେ କର ଦରଶନ,
ହୃଦପଦ୍ମେ ରାଜ ଭକତି ଧରି ।
ଶ୍ୱେତମୁଖେ ଶ୍ୱେତହାସର ସଞ୍ଚାର,
ଆହା କି ସୁନ୍ଦର ଦିଶଇ ଆକାର,

ଦେଖୁଛନ୍ତି ତୁମ୍ଭ ସ୍ୱରୂପ ପ୍ରକାର,
ତୁମ୍ଭରି ଉପରେ ସୁଦୃଷ୍ଟି କରି ।

୬

ରୁକ୍ଷ କେଶ ତବ ସସ୍ନେହ ଦର୍ଶନ,
ଅଙ୍ଗ ଆବରଣ ମଳିନ ବସନ,
ଦେଖି ସତେ ଲାଟ କରନ୍ତି ଚିନ୍ତନ,
ଆହା କି ଗରିବ ଉତ୍କଳବାସୀ ।
ନବାଙ୍କ ଦୁର୍ଭିକ୍ଷେମରିଲେ ଅନେକ,
ତାଙ୍କ ବଂଶଧର ଅଛନ୍ତି ଯେତେକ,
ଜଣା ଯାଏ ଶେଷ ହୋଇଲା ପ୍ରାୟେକ,
ଅନ୍ନ ଦୁଃଖ ଆହା ଦେଉଛି ଗ୍ରାସି ।

—o—

## ତୃତୀୟ ଅଧ୍ୟାୟ । – ପ୍ରଜାଙ୍କ ପ୍ରାର୍ଥନା ।

୭

ଦରିଦ୍ର ପକ୍ଷରେ ରାଜ ଦରଶନ,
ଅତି ସୁଖପ୍ରଦ ଉତ୍ସାହ ବର୍ଦ୍ଧନ,
କରେ ଅମାନିଶି ଅନ୍ତରେ ଯେସନ,
ପୂର୍ଣ୍ଣ ଚନ୍ଦ୍ରୋଦୟ ହେଲେ ଆକାଶେ ।
ଉଜ୍ଜ୍ୱଳ କିରଣ ଆକାଶେ ନଚାଏ,
ମଳିନ ହୃଦୟେ ମଳିନତା ଯାଏ,
କେତେ ଆଶା ମନେ ଅଙ୍କୁରିତ ପାଏ,
ହୃଦେ ଭାବ-ସୁଖ-ଜ୍ୟୋତି ବିକାଶେ ।

୮

କେଉଁ ଉପହାରେ କରିବୁଁ ପୂଜନ,
ଏ ଶୂନ୍ୟ କୁଟୀର ଏ ଦୁଃଖ ଜୀବନ,

ଲାଟ ଦର୍ଶନ

ତୁମ୍ଭେତ ମହତ ହେ ଲାଟ ରାଜନ,
ଏ ହୃଦୟ ଭାବ କର ଗ୍ରହଣ ।
ମହତ ପକ୍ଷରେ ପ୍ରକୃତି ପୁଞ୍ଜର,
ହୃଦୟର ଭକ୍ତି ସୁବର୍ଣ୍ଣ ଆକର,
ତୁଚ୍ଛ ସ୍ୱର୍ଣ୍ଣ ଖଣି ଭକ୍ତି ଶ୍ରେଷ୍ଠତର,
ଅଟଇ ନିଶ୍ଚୟ ଜାଣ ରାଜନ ।

୯

ଆମ୍ଭ ରାଜ୍ୟେ ଏବେ ହୋଇଛ ପ୍ରବେଶ,
କହିବା ମାଗିବା ଲଜ୍ଜା ନାହିଁ ଲେଶ,
ଦିଅ ବା ନ ଦିଅ କି ଅଛି ବିଶେଷ,
ପ୍ରଜାତ ରାଜାଙ୍କୁ କରନ୍ତି ଭିକ୍ଷା ।
ସ୍ୱହସ୍ତେ କରନ୍ତେ ଧନ କରତନ,
ମ୍ଳାନ ହେଲା ସବୁ ବିଦ୍ୟା ନିକେତନ,
ଅଧିକ ନ ଦେଲେ ରାଜକୋଷୁଁ ଧନ,
ଅବନତି ଲଭେ ଉତ୍କଳେ ଶିକ୍ଷା ।

୧୦

ଦେଖହେ ରାଜନ ଉପକୂଳ ସ୍ଥାନ,
ଜମ୍ବୁ, ହୁକିଟୋଲା କି ମହାଶ୍ମଶାନ,
ଦେଖି ତରଳିତ ହୃଦୟ ପାଷାଣ,
କି କହିବି ଏହି ଦୁଃଖର କଥା ।
ଇଚ୍ଛାହୁଏ ନାହିଁ ଅଧିକ ଉଦୟ,

୧୧

କରି ଏହି କଥା ନୃପତି ହୃଦୟ,
କରିବାକୁ ତବ ଅତି ଦୁଃଖମୟ,
ଜାଣିଚ ହୃଦୟେ ପାଇବ ବ୍ୟଥା ।



ବିଂଶତି ସହସ୍ର କରିଛ ପ୍ରଦାନ,
ଦୁଃଖିଙ୍କ ନିମିତ୍ତ ସାହାଯ୍ୟ ସଂସ୍ଥାନ,
ଉଠୁଛି ହୃଦୟେ କୃତଜ୍ଞତା ଜ୍ଞାନ,
ରାଜାର ପ୍ରକୃତ ଧର୍ମ ଏ ସିନା ।
ଆହୁରି କିଞ୍ଚିତେ କର ବିତରଣ,
ନ ହେଲେ ଦୁଃଖିର ନ ରହେ ଜୀବନ,
ହେଳା କଲେ ହେବ ଅଯଶ ଅର୍ଜ୍ଜନ,
ଭବିଷ୍ୟତେ ଲାଟ ପଡ଼ିବ ଚିହ୍ନା ।

୧୨

କରିଚତ ଥରେ ସେ ସମାଲୋଚନା,
ନିକଟେ ଥିବାରୁ କରୁଛୁଁ ପ୍ରାର୍ଥନା,
ଜଳକର କାର୍ଯ୍ୟେ ପ୍ରଜାଙ୍କ ଯାତନା,
ଦେଖି ଯାଅ ଥରେ ନିଜ ଚକ୍ଷୁରେ ।
ପଡ଼ି ମହାନଦୀ ପ୍ରବଳ ସ୍ରୋତରେ,
ହରାଇଣ ବୃତ୍ତି ବାଲୁକାସ୍ତୂପରେ,
ବାଙ୍କି ରାଜ୍ୟେ ପ୍ରଜା ଅଛନ୍ତି କଷ୍ଟରେ,
ଦେଖ ଏକା ଆଶା ଜଳ ବାୟୁରେ ।

୧୩

ଅସ୍ତ୍ର ଆଇନରେ ଅସ୍ତ୍ରର ଧାରଣ,
ଦୃଢ଼ତର ରୂପେ ହୋଇଛି ବାରଣ,
ତେଣୁ କୃଷକର ଶସ୍ୟର ରକ୍ଷଣ,
ଅତି କଷ୍ଟକର ହୋଇଛି ଏବେ ।
ଅତି ନିଦାରୁଣ ବନ୍ୟ ଜୀବଚୟ,
କରୁଛନ୍ତି ସୁଖେ ସବୁ ଶସ୍ୟ କ୍ଷୟ,
ଦୟାଶୀଳ ହେଲେ ଲାଟ ମହୋଦୟ,
ଆପଦୁଁ ବଞ୍ଚିବେ ପରଜା ତେବେ ।

୧୪

ଭିନ୍ନ ଭିନ୍ନ ଶାସନରେ ଏ ଉତ୍କଳ,
ପଡ଼ନ୍ତେ ଉନ୍ନତି ନ ହୁଏ ଚଞ୍ଚଳ,
ନାନା ଭେଦାଭେଦ ବଢ଼ୁଛି ପ୍ରବଳ,
ଦେଶ ରୀତି ନୀତି ରାଜବିଧିରେ ।
ଗଞ୍ଜାମ, ସମ୍ବଲପୁରର ଯେସନ,
କଟକ ସଙ୍ଗରେ ହୋଇବ ମିଳନ,
କରିବ ହେ ଲାଟ ତହିଁରେ ଯତନ,
ଅକ୍ଷୟ କୀରତି ହେବ ମହୀରେ ।

୧୫

ବାଷ୍ପୀୟ ଶକଟ ଚଳିବ ଏଦେଶେ,
ଶୁଣିବ ଆନନ୍ଦ ହେଉଛୁଁ ବିଶେଷେ,
ବିଳମ୍ବ ନକରି ସେ କାର୍ଯ୍ୟ ନିମେଷେ,
କରାଇଲେ ଲାଟ ଚଞ୍ଚଳ କରି ।
କ୍ଷଣକ ମଧରେ ବଳାଇବୁଁ ମନ,
କାଶୀ, କାନପୁର, କାଶ୍ମୀର ଗମନ,
କରିବୁଁ ଦେଖିବୁଁ ଯେ ଅଟେ ସ୍ୱପନ,
ରାଜାଙ୍କ ମଙ୍ଗଳବାନାକୁ ଧରି ।

୧୬

ଆଶୀର୍ବାଦ କରୁଛନ୍ତି ପ୍ରଜାକୁଳ,
ହୋଇଥିଲ ଲାଟ ତୁମ୍ଭେ ଅନୁକୂଳ,
ଖୋରଧା ପ୍ରଜାଙ୍କ ମାନ ଅପ୍ରତୁଳ,
ରଖିଲ, ସେମାନେ ରହିଲେ ଠାବେ ।
ପଞ୍ଚମାଂଶ କର କରନ୍ତେ ବିୟୋଗ,
ପ୍ରଜାଙ୍କ ପକ୍ଷରେ ହେଲା ମହାଯୋଗ,

ବାଞ୍ଛନ୍ତି ତୁମ୍ଭର ସର୍ବଦା ନିୟୋଗ,
ବଙ୍ଗ ସିଂହାସନେ ଅଟଳ ଭାବେ ।

୧୭

ଆହୁରି ଗୋଟିଏ ଏହି ନିବେଦନ,
ଘେନିବ ଆମ୍ଭର ଦୟାଳୁ ରାଜନ,
କଟକେ ଧବଳପୁର ନିରୀକ୍ଷଣ,
କରିଣ ଉତ୍କଳ ଐଶ୍ୱର୍ଯ୍ୟ କଥା ।
କ୍ଷଣକ ନିମିତ୍ତ ନ ଧରି ସୁମନେ,
ଯିବ ପଲ୍ଲୀଗ୍ରାମ ସକଳ ଦର୍ଶନେ,
କି କଷ୍ଟ ପରଜା ଲଭନ୍ତି ଅଶନେ,
ଭାବିବ ଉତ୍କଳ ଅବସ୍ଥା ଯଥା ।

୧୮

ପ୍ରଜାଙ୍କ ଆଶୀଷ ବଚନ ଗ୍ରହଣ,
କର ଲାଟ ସୁଖେ ଉତ୍କଳେ ଭ୍ରମଣ,
ନିରାପଦେ ଫେରି ରାଜସିଂହାସନ,
ଆରୋହଣ କର ରାଜଧାନୀରେ ।
କରନ୍ତୁ ଏ ଶୁଭ ଘଟନ ଈଶ୍ୱର,
ଦେଖନ୍ତୁ କଟକ, ପୁରୀ, ବାଲେଶ୍ୱର,
ଉତ୍କଳ, ବେହାର, ବଙ୍ଗଳା ଈଶ୍ୱର,
ଜୟ ଟମ୍‌ସନ ଜୟ ବାଣୀରେ ।

—୦—

## ଚତୁର୍ଥ ଅଧ୍ୟାୟ । — କଟକ ଦରବାର ।

୧୯

ଶ୍ରେଣୀବଦ୍ଧ କରି ବୀର ସେନାଦଳ,
ଦେଖାଇଣ ବୀର ଦର୍ପକୁ ପ୍ରବଳ,

ଦରବାର ପାଶେ ମିଳିଲେ ଚଞ୍ଚଳ,
ସେନାପତିମାନେ ପାଇ ଆଦେଶ ।
ବୀରବାଦ୍ୟରାଜି ବାଜି ଘନ ଘନ,
ନୃପତିଗଣଙ୍କୁ କଲା ଆମନ୍ତ୍ରଣ,
ଯଥାମତେ ଅଙ୍ଗ କରିଣ ଭୂଷଣ,
କିଲା ଦରବାରେ ହେଲେ ପ୍ରବେଶ ।

୨୦

ପୁରୀରାଜାଙ୍କର ଗମନ କାଳରେ,
କିବା ରାଜଭକ୍ତି କହିବି ସ୍ଥୂଳରେ,
ହୁଳହୁଳି ଶବ୍ଦ ଯୁବତୀ କୁଳରେ,
କି ଅପୂର୍ବ ଶୋଭା କଲେ ଧାରଣ ।
ଅସଂଖ୍ୟ ମାନବ ଯାନ ସହିତରେ,
ମଙ୍ଗଳଧ୍ୱନିକ କରିଣ ମୁଖରେ,
ଚଳିଲେ ଯେସନେ ନଦୀସ୍ରୋତ ଖରେ,
କୋଟି ନିଧି ସତେ ହସ୍ତମଣ୍ଡନ ।

୨୧

ଧନ୍ୟ ସେ ଜୀବନ ପୁରୀ ଅଧୀଶ୍ୱର,
ରାଜ୍ୟର ଅଭାବେ ଏ ଭକ୍ତି ପ୍ରଖର,
ସ୍ୱଦେଶର ଅନୁରାଗ କି ସୁନ୍ଦର,
କାହା ଭାଗ୍ୟେ ଆଉ ଏମନ୍ତ ଗଣି ।
ଏ ଦୃଶ୍ୟ ଦର୍ଶନେ ଭାବୁକ ଅନ୍ତର,
ଉଛୁଳି ତରଙ୍ଗ ଉଠଇ ପ୍ରଖର,
ରହିଛି ପ୍ରବାଦ ଉତ୍କଳ ଦେଶର,
ଲକ୍ଷେ ରାଜାମଧ୍ୟେ ମଉଡ଼ମଣି ।

୨୨

ନିର୍ଦ୍ଦିଷ୍ଟ ସମୟେ ଲାଟ ଟମସନ,
ଦରବାର ଗୃହେ ଘେନିଲେ ଆସନ,

ବାଜାବାଜେ ତୋପ ଉଠେ ଘନଘନ,
ଇଂରେଜ ପ୍ରତାପ ଦର୍ଶାଏ ଖରେ ।
କଲେ ଶ୍ରୀମୁଖରେ ଆଦେଶ ପ୍ରଚାର,
ବସାଇ ପୁରୀର ଶ୍ରୀ ରାଜକୁମାର,
ଦେଲେ ରାଜପଦ, ମୁକ୍ତାର ହାର,
ଜୟଧ୍ୱନି ହେଲା ପ୍ରତି ମୁଖରେ ।

୨୩

ଅନ୍ୟ ନୃପଗଣେ କରି ସମ୍ବୋଧନ,
ଉପଦେଶ ଦେଲେ ଲାଟ ଟମସନ,
କର ଶାନ୍ତି ସୁଖେ ସ୍ୱରାଜ୍ୟ ପାଳନ,
ଶେଷେ ବିତରିତ ଅତର ପାନ ।
ସମ୍ମାନସୂଚକ ଶେଷ ତୋପ ସ୍ୱନ,
ଉଠିଲା, ଚଳିଲେ ଲାଟ ଟମସନ,
ପଥ ଶୋଭା କରି ଗଲେ ନୃପଗଣ,
ଉଡାଇ ଉଡାଇ ଜୟ ନିଶାଣ ।

—o—

# ଲାଟ ଦର୍ଶନ

(ବଙ୍ଗ ପ୍ରଦେଶର ଲେଫଟ୍‌ନେଣ୍ଟ ଗଭର୍ଣ୍ଣର ସାର ଚାର୍ଲସ ଇଲିୟଟ୍‌ଙ୍କ ଓଡ଼ିଶା ଆଗମନ ଉଦ୍ଦେଶ୍ୟରେ ଲିଖିତ)

୧

କର ଆଶୀର୍ବାଦ ଶୁଦ୍ଧମନେ ଧାଇ,
ନୃପ ନାମେ ଦୂର୍ବା ଅକ୍ଷତ ପକାଇ,
ଇଂରାଜଙ୍କ ଶତ୍ରୁ ଦୂରେ ଥାନ୍ତୁ ଯାଇ,
ଉଡୁ ସତେଜରେ ବ୍ରିଟିଶ ଧ୍ୱଜା ।
ଭାରତଈଶ୍ୱରୀ ଭିକ୍ଟୋରିୟା ରାଣୀ,
ପୁତ୍ରବଧୂ ଘେନି ଗୃହେ ଯେତେ ପ୍ରାଣୀ,
କୁଶଳେ ରହନ୍ତୁ ନୋହୁ ଦୁଃଖ ଗ୍ଲାନି,
ବାଞ୍ଛ ହେ ସକଳ ଉତ୍କଳ ପ୍ରଜା

୨

ଶାସନ ବାଡ଼ର ସୁବ୍ରାହ୍ମଣ ଗଣ,
ପୀଠେ ପୀଠେ ବସି ମଙ୍ଗଳାଚରଣ,
ଲାଟଙ୍କ ହିତରେ ବଗଳା ସ୍ମରଣ,
ଶ୍ରୀମଧୁସୂଦନ କୀର୍ତ୍ତନ କର ।
କରି ଜଳଶାୟୀ ଦଧି ମରଦନ,
ଦେଇ ବିଲ୍ୱପତ୍ର କୁସୁମ ଚନ୍ଦନ,
ମାଳୀଭୋପାଶିବ ମସ୍ତକ ମଣ୍ଡନ-
କର ଶୁଭଡାକ ଛାଡ଼ ତତ୍ପର ।

୩

ପୁର କାବିନୀଗୋ ପବିତ୍ର ଭାବରେ,
ଦାଣ୍ଡ ଦ୍ୱାର ଲିପି ସଦ୍ୟ ଗୋମୟରେ,

ପଣ୍ଡିତ ଗୋବିନ୍ଦ ରଥ

ଚିତାଦିଅ ପଞ୍ଚବର୍ଣ୍ଣ ମୁରୁଜରେ,
ପୂର୍ଣ୍ଣକୁମ୍ଭ ଦ୍ୱାରେ ଦ୍ୱାରେ ସଜାଅ ।
ନିର୍ମଳ ବଦନେ ହୁଳହୁଳିଦେଇ,
ଦୂବ ବରକୋଳି ପତ୍ର ହାତେ ନେଇ,
ଘୃତ ଦୀପ ଧରି ନ ଦେଖନ୍ତୁ କେହି,
ରାଜଲକ୍ଷ୍ମୀଙ୍କି ଗୋ ଯାଇ ବନ୍ଦାଅ ।

୪

ଆହେ ବିଷୟଜ୍ଞ ସର୍ବବେତା ଗଣ,
ରାଜଭକ୍ତି ଭାବେ ଉଛୁଳାଇମନ,
ରାଜପଥେକର ପତାକା ବନ୍ଧନ,
ସାମିୟାନା ବାନ୍ଧ ସୁନ୍ଦର କରି ।
ନିରୂପିତ ବେଳେ ଯାଇ ସଙ୍ଗଧରି,
ଯୋବରାଘାଟରେ ଦରଶନ କରି,
ସ୍ତୁତିପାଠେ ରାଜସମ୍ମାନରେ ବରି,
ନଗରକୁ ଆଣ କରି ସାଦର ।

—o—

**ଲାଟଙ୍କ ନିକଟରେ ଦୁଃଖ ବର୍ଣ୍ଣନାରେ ।**

୫

ରାଜପୌତ୍ରଙ୍କର ଅମୂଲ୍ୟ ଜୀବନ,
ଅସମୟେ କାଳ କରିଛି ହରଣ,
ଏ ଦାରୁଣ ବାର୍ତ୍ତା ନୋହୁଂ ବିସ୍ମରଣ,
ଉତ୍କଳକୁ ଯାତ୍ରାକଲ ଆପଣ ।
ଏ ଦୁଃଖ ସମୟେ ନିଜ-ଦୁଃଖ କଥା,
କହିବାକୁ ମନେ ଜାତ ହୁଏ ବ୍ୟଥା,
ଚିର ପ୍ରଚଳିତ ଅଛି ଏହି ପ୍ରଥା,
ନକହିଲେ ହେବ ଅତି ଦୂଷଣ ।

୬

କି କହିବି ଲାଟ ଆଲୋକ ଅନ୍ଧାର,
ମଧ୍ୟରେ ଯେପରି ପ୍ରଭେଦ ବିସ୍ତାର,
ସେହିପରି ଏକା ଘଟିଛି ଏବାର,
ସୁଖଯାଇ ଦୁଃଖ ପଡ଼ିଛି ମାଡ଼ି ।
ଉତ୍କଳ ଭୂମିକି କଲେ ଆଗମନ,
ସଂହାର ମୂରତି ଘୋର ପ୍ରଭଞ୍ଜନ,
ଘେନି ସଙ୍ଗେ ସଖା ଜୀମୂତ ବାହନ,
ମହାଲକ୍ଷ୍ମୀ ଦେବୀ ଗଲେଟି ଛାଡ଼ି ।

୭

ଯାଅ ଲାଟ ସ୍ଥାନେ ସ୍ଥାନେ ଫେରିକରି,
କି ଦୃଶ୍ୟ ଦେଖିବ ନୟନରେ ଭରି,
ସ୍ରବିବ ନେତ୍ରରୁ ଲୋତକ ଲହରୀ,
ନୁହଇ ଏସବୁ ଅଳୀକ କଥା ।
ଦେଖ ହେ ପ୍ରଥମେ ଏକେନ୍ଦ୍ର ପତନ,
ଭୂଜଙ୍ଗ ଷଣ୍ଢଙ୍କ ପ୍ରଧାନ ଆସ୍ଥାନ,
ବାଲୁବିଶ ବିଷ ଭରି ମରୁସ୍ଥାନ,
ପାଆନ୍ତି ପରକା ଯେମନ୍ତ ବ୍ୟଥା ।

୮

ଶୂନ୍ୟ କ୍ଷେତ୍ରହୋଇ ପଡ଼ିଛି ଝଙ୍କଡ଼,
ହରିଶ ମରିଚପୁର ଦୃଢ଼ଗଡ଼,
ବାଲିକୁଦା ବାଲିକୁଦରେ ଅତଡ଼,
ହରିହରପୁର ମହାଶ୍ମଶାନ ।
ଦେବଗ୍ରାମ ପୂତ ପ୍ରାଚୀନଦୀ ତଟ,
ମାଧବଙ୍କ ପୀଠ ଅତ୍ୟନ୍ତ ସଙ୍କଟ,
ପଶୁପକ୍ଷୀ ନାଶେ ନଷ୍ଟ ବାଟଘାଟ,
ନଦେଖେ ନୟନ ନ ଶୁଣେ କାନ ।

୯

ଦେଖ ଶ୍ରୀପୁରୁଷୋତ୍ତମ କ୍ଷେତ୍ରଧାମ,
ଯାହା ଯୋଗେ ହିନ୍ଦୁ ପବିତ୍ର ସୁନାମ,
ପ୍ରକାଶି ଭାରତେ କୃତି ଆତ୍ମକାମ,
ସେହି ପୀଠେ ଆଜି କି ଦୁଃଖବାଣୀ ।
ଶ୍ରୀଜଗନ୍ନାଥଙ୍କ ପ୍ରଧାନ ମନ୍ଦିର,
ନୀଳଚକ୍ର ବକ୍ର ଭାଗରେ ଅସ୍ଥିର,
ମହାକଳ୍ପବଟ ଉପୁଡ଼ି ଭୂମିର,
ଉତ୍ପାତେ କି ଦଶା ହେବ କେ ଜାଣି ।

୧୦

ନାରିକେଳ ନାଗବଲ୍ଲୀଯେ ପୁନ୍ନାଗ,
ଗୁବାକ ପନସ ରମ୍ଭା ଆମ୍ରବଣ,
ସରିଅଛି ସର୍ବସୁନ୍ଦର ସରାଗ,
ଶବ ସମ ଶୋଇଛନ୍ତି ଭୂଭାଗେ ।
ଅନୁକୂଳ ଫଳ ଅଟେ ଯେ ଶ୍ରୀଫଳ,
ତହିଁ ବଶୀଭୂତ ଅଟଇ ଉତ୍କଳ,
ପାନଖିଲି ଖଣ୍ଡି ପ୍ରଧାନ ସମ୍ବଳ,
କି ଦେବ ବନ୍ଧୁଙ୍କୁ ସ୍ନେହାନୁରାଗେ ।

୧୧

ଅନଶନେ ମନ ବଡ଼ ଛନଛନ,
ଛପରରେ ନାହିଁ ଲଇଗଣ୍ଡି ଛଣ,
ଦିବା ତାପେ ରାତ୍ରେ ଶିଶିର କଷଣ,
ପାଉଛନ୍ତି ତବ ପରଜା ଚୟ ।
ନାହାନ୍ତି ଶକୁନୀ ଗୃଧ୍ରିନୀ ନିଚୟ,
ମୃତ ଶବ ପଚି କି ଦୁର୍ଗନ୍ଧମୟ,
ରାଜ୍ୟଖଣ୍ଡ ଆଜି ଅଯୋଗ୍ୟ ଅଥୟ,
ମହାମାରୀ ସ୍ଥାନେ ସ୍ଥାନେ ଉଦୟ ।

୧୨

କରଯୋଡ଼ି କରୁଅଛି ନିବେଦନ,
କରଲାଟ ଦୟା-ବାରି ବରଷଣ,
କଳ୍ପଦ୍ରୁମ ସମହୋଇ କର ଦାନ,
ସ୍ୱପ୍ନ ସିନ୍ଧୁ ସଙ୍ଗେ ମିଶୁ ଏ ଦୁଃଖ ।
ଉଡିବ ନୃପତି-ସୁଯଶ କେତନ,
ଅନକ୍ଳିଷ୍ଟ ଏହି ଉତ୍କଳ ଭୁବନ,
ସୁସ୍ଥ ହେବ ଆକୁଳିତ ପ୍ରଜାମନ,
ବଢ଼ିବ କି ସତେ କାମନା ସୁଖ ।

୧୩

ଏ ଶାସନ ନୀତି ନିତି ଦୁଃଖ କର,
ବିଚାରର ବ୍ୟୟ ଅତି ଗୁରୁତର,
ଏଦେଶୀ ନୁହନ୍ତି ତେଡ଼େ ଶକ୍ତିଧର,
ଧୀରେ ଲାଟ ଏହା କର ବିଚାର ।
ଭାଗ୍ୟେ ଦଣ୍ଡବିଧି ଦେଓ୍ୱାନୀ ଅଧୀନ,
ହୋଇ କେତେ ଜନ ହେଲେ ଶକ୍ତିହୀନ,
ଏ ଜୀବନେ ତାଙ୍କ ହୃଦୟ କଠିନ,
ଦୈନ୍ୟ ଦଶା କ୍ରମେ ହୁଏ ପ୍ରସାର ।

୧୪

ରାଜବିଧି ଯେତେ ହୋଇବ ସରଳ,
ଶାସନେ ସୁନ୍ଦର ଚଳିବ ଏ ସ୍ଥଳ,
ହସ୍ତୀ ବନ୍ଧନକୁ ଯୋଗ୍ୟ ଯେ ଶୃଙ୍ଖଳ,
ମୂଷିକ ପକ୍ଷରେ ସେ ବିପରୀତ ।
ସ୍ଫଟିକ ଉପରେ ପଡ଼ିଲେ ଆଘାତ,
ଚୂର୍ଣ୍ଣିଭୂତେ ଯେହ୍ନେ ହୁଏ ଭୂମିସାତ,
ତେସନେ ଏଜନେ ହୁଅନ୍ତି ନିପାତ,
ଜଟିଳ ବିଧିରେ ହୋଇ ନିହିତ ।

୧୫

ଦଶବିଂଶ ଗ୍ରାମେ ବିଚାର ଆଳୟ,
ପ୍ରତିଷ୍ଠିତ ହେଲେ ନରହିବ ଭୟ,
ପୁରାତନ ରୀତି କଲେକ ଆଶ୍ରୟ,
ଅଳ୍ପ ବ୍ୟୟେ ହେବ କାର୍ଯ୍ୟ ସାଧନ ।
ହିନ୍ଦୁ ରାଜାମାନେ ଗ୍ରାମରେ ପ୍ରଧାନ,
ସୃଷ୍ଟି କରିଥିଲେ ଏକା ଏ କାରଣ,
କ୍ଷୁଦ୍ର ବିବାଦକୁ କରି ନିବାରଣ,
ଗୁରୁଦେବେ ରାଜାପାଶେ ପ୍ରେରଣ ।

୧୬

ମହାମାନ୍ୟ ଲାଟ ଆଉଏବେ ଥରେ,
ଦୃଷ୍ଟିପାତ କର ବାଣିଜ୍ୟବ୍ୟାପାରେ,
ଏଦେଶୀ ଶିଳ୍ପିଙ୍କ ଅବସ୍ଥାକୁ ବାରେ,
କି ଭୋଗୁଛନ୍ତି ସେ ଜଠର ଜ୍ୱାଳା ।
କାହାଯୋଗେ ଏହା ହୁଏ ସଂଘଟନ,
ଛାମୁ ତ ସୁବିଜ୍ଞ କି ଦେବି ବଚନ,
ବିଲାତି ଦରବ କରିଅଛି ପଣ,
ଉପହାର ଦେଇ ଦାରିଦ୍ର୍ୟମାଳା ।

୧୭

ଜଣାଉଛି ଲାଟ ହୋଇ ସୁବିନୀତ,
ଏ ଶିକ୍ଷା ପ୍ରଣାଳୀ ନୁହେ ମନୋନୀତ,
ହିନ୍ଦୁ ଜାତିଭେଦ ଅଜ୍ଞାତେ ନିଶ୍ଚିତ,
ଉଠୁଅଛି ଧୀରେ କର ଦର୍ଶନ ।
ନାନାଜାତି ଶିଶୁ ବସି ଏକାସନେ,
ଲାଗିଛନ୍ତି ସଦା ଭାଷା-ଅଧ୍ୟୟନେ,
ସ୍ୱକୀୟ ବୃତ୍ତିକି ଛାଡ଼ି ତୁଚ୍ଛ ଜ୍ଞାନେ,
ଦାସ ପଣେ ମାନ ବୋଧନ୍ତି ମନ ।

୧୮

ଶୁଣାଥିବ ଲାଟ ହିନ୍ଦୁଙ୍କ ପୁରାଣ,
ଶ୍ରୀରାମଚରିତ ଦିଲ୍ଲୀପ ଆଖ୍ୟାନ,
କରିଥିଲେ ଯେହ୍ନେ କର ନିର୍ଦ୍ଧାରଣ,
ଏହି ହିନ୍ଦୁସ୍ଥାନେ ନୃପତି ସାର ।
ତହିଁ ସଙ୍ଗେ ଯେବେ କରିବ ତୁଳନା,
ଏକର ବ୍ୟବସ୍ଥା ପଡ଼ିବ କଳନା,
ନବ ବନ୍ଦୋବସ୍ତେ କି ଉତ୍ସୁକମନା,
ହେବ ବୋଲି ଲାଟ ନୁହେଁ ବିଚାର ।

୧୯

ବହୁକାଳୁଁ କେତେ ଲାଟଙ୍କ ଛାମୁର,
କରୁଅଛୁଁ ଆମ୍ଭେ ଗୁହାରି ପ୍ରଚୁର,
ମିଳାଇବା ପାଇଁ ଏ କଟକ ପୁର,
ସଙ୍ଗରେ ସମ୍ବଲପୁର ଗଞ୍ଜାମ
କହି କହି ଲାଟ ଥକିଲୁଁ ଏଥର,
ନ ଶୁଣିଲେ ଆଉ କି ଅଛି ଉତ୍ତର,
ଲୌହ ସଙ୍ଗେ ଯେହ୍ନେ ଲାଗେ କର୍ମକାର,
ସେହିପରି ସିନା ଆମ୍ଭର କାମ ।

୨୦

ଷୋଳକଳା ନାହିଁ ଶସ୍ୟ ଉତପନ,
କାହିଁ ଧୋଇ କାହିଁ ମରୁଡ଼ି ଘଟନ,
ଥାନେ ଥାନେ ଡାଳେ ଡାଳେ ମାତ୍ର ଧାନ
ତରୁତଳେ ଇନ୍ଦୁ କିରଣ ଯଥା ।
ରବିଖନ୍ଦ ପୁଣି ଯଥା ତଥା ଜାଣ,
ଭୋଗିଅଛି ଯେଉଁ ବତାସର ଟାଣ,
ଏମନ୍ତ ସ୍ଥଳରେ ରହିଛି ପ୍ରମାଣ,
ରାଜକର ଛାଡ଼ ପାଇବା ପ୍ରଥା ।

୨୧

କେତେ ସୁଖକାର୍ଯ୍ୟ କରିଛ ବିଧାନ,
ବାଷ୍ପୀୟ ଶକଟ ସାମୁଦ୍ରିକଯାନ,
ଅତି ମନୋହାରୀ ପକ୍କାବାଟମାନ,
ଡାକଘର କେତେ ସୁବିଧାକାରୀ ।
କି କରୁବୁଁ ଆମ୍ଭ କପାଳତ ମନ୍ଦ,
ଏ ସୁଖଭୋଗରେ ଘଟୁଅଛି ଦ୍ୱନ୍ଦ,
ସତକଥା ଲାଟ ନ ମଣିବ ଛନ୍ଦ,
ଏକା ଅନ୍ନଚିନ୍ତା ଦେଲାଟି ସାରି ।

୨୨

ପୁରାକାଳୁଁ ହିନ୍ଦୁଙ୍କର ଏହି ଜ୍ଞାନ,
ରାଜାପ୍ରଜା ପକ୍ଷେ ଦେବତା ସମାନ,
ପ୍ରଜାସୁଖଦୁଃଖ କରନ୍ତି ଶ୍ରବଣ,
କହିଲି ଏସବୁ ଏହି କାରଣେ ।
ସୁଖେ ଥାଅ ଲାଟ ବଙ୍ଗଳା ଗାଦିରେ,
ଯାଉଅଛି ମୁହିଁ ମୋ ପର୍ଣ୍ଣକୁଟୀରେ,
ପଦେକଥା ଶେଷେ କହୁଛି ସଧୀରେ,
ଦୁଃଖୀ ଓଡ଼ିଆଙ୍କୁ ରଖିବ ମନେ ।

ଶ୍ରୀଗୋବିନ୍ଦ ରଥ
କଟକ

—o—

# ଲାଟ ଦର୍ଶନ

## ପ୍ରଥମ ସ୍ତୋକ । ଅଭିବାଦନ ।

୧

ସୁଦୀର୍ଘ ଜୀବିନି ଜୁବିଲି ଭୋଗିନି
ଜୟ ଭିକ୍ଟୋରିଆ ବ୍ରିଟନବାସିନି
ବୀର ସୈନ୍ୟବଳେ ରସକମ୍ପାୟିନି
        ସଦାରଙ୍ଗଧ୍ୱଜା ଉଡୁଭାରତେ ।
ଆସ ପ୍ରତିନିଧି ଲାଟ ବଙ୍ଗେଶ୍ୱର
କ୍ଷଣେ ବସ ପତ୍ରାବଳୀ ମଣ୍ଡପର
କୁଶଳତ ସବୁ ମହାରାଣୀଙ୍କର
        ଦିଅ ସୁଖବାର୍ତ୍ତା ପ୍ରଜା ଆଗ୍ରତେ ।

୨

ଅଳ୍ପକାଳ ହେଲା ପାଇ ଲାଟପଣ
ବହୁତ ସୁଯଶ ପାଇଛ ଆପଣ
ଭଲକଥା ହେଲା ଏ ଶୁଭାଗମନ
        ଦେଖିଲୁଁ କଟକେ ଆନନ୍ଦେ ଏବେ
ସ୍ମୃତିପଥେ ଆଜିହୁଏ ଉଦ୍ଦୀପନ
ସମ୍ବଲପୁରର ଭାଷା ଆନ୍ଦୋଳନ
ପୂର୍ବଚିହ୍ନ ଲାଟ ହେ ଉଡବରନ
        ନାଗପୁରେ ଚିଫ୍ ଆସନେ ଯେବେ ।

—୦—

## ଦ୍ୱିତୀୟ ସ୍ତୋକ । ପରିଦର୍ଶନ

୩

ମହାନଦୀ ବ୍ରାହ୍ମୀମୂଳ ରମ୍ୟସ୍ଥାନ
ଦେଖିବକି ଲାଟ ପର୍ବତ କାନନ

ପଣ୍ଡିତ ଗୋବିନ୍ଦ ରଥ

କପିଳାସ ଗିରି ମଞ୍ଜୁ ନିକେତନ
ଚନ୍ଦ୍ରଶେଖରଙ୍କ ଅମୃତଝର ।
ଏ ପ୍ରଦେଶେ ଥିଲେ କେତେ ମହାବଳ
ବ୍ରିଟିସ ସିଂହଙ୍କୁ ପ୍ରତାପ କୌଶଳ
କାଳବଶେ ତାଙ୍କୁ କରିଛି କବଳ
ଯେବା ଅବଶେଷେ କ୍ରୋଟ ଭିତର ।

୪

ଦେଖିବକି ଲାଟ ବିରଜା ମଣ୍ଡଳ
ଧରଣୀ ପବିତ୍ରା ବୈତରଣୀ ଜଳ
ବରାହନାଥଙ୍କ ସେ ପୀଠ ସୁଢ଼ଳ
ଯାଗ ସ୍ତମ୍ଭ ଆଦି ବର୍ଣ୍ଣିବିକେତେ ।
ଯଜାତି କେଶରୀ ଏ କିର୍ତ୍ତୀ କଳାପ
କରିଥିଲେ ପୂର୍ବେ ଯାହାଙ୍କ ପ୍ରତାପ
ଥିଲା ଏ ଉତ୍କଳେ ଅସୀମ ଅମାପ
ମୋହିତ ହୋଇବ ଦେଖିବ ଯେତେ ।

୫

ଦେଖିବକି ଲାଟ ଏକାମ୍ର କାନନ
ଲିଙ୍ଗରାଜ ପ୍ରଭୁ ଯହିଁ ବିଦ୍ୟମାନ
ଲଲାଟକେଶରୀ ନୃପ କୀର୍ତ୍ତିମାନ
ଖଣ୍ଡଗିରି ଶିଳା ଗୁମ୍ଫାଗଠନ ।
ଉଠିବ ସେଠାରେ ଶିଖର ଉପର
ବୃତ୍ତାକାରେ ରାଜ୍ୟ ଦୃଶ୍ୟ ମନୋହର
ଲଭିବ ଆନନ୍ଦ ଅତୁଳ ହୃଦର
ସାର୍ଥକ ହୋଇବ ନୟନମନ ।

୬

କିବା ମନୋହର ମହୋଦଧୀ ତୀର
ଦେଖିବ ହେ ଲାଟ ଶ୍ରୀକ୍ଷେତ୍ରେ ମନ୍ଦିର

ଲାଟ ଦର୍ଶନ

ଇନ୍ଦ୍ରଦ୍ୟୁମ୍ନଙ୍କର ସୁକୀର୍ତ୍ତି ମହିର
ନାହିଁ ଏହା ସଙ୍ଗେ ତୁଳନା କାହିଁ ।
ଶ୍ରୀପୁରୁଷୋତ୍ତମେ ବାନର ପ୍ରବଳ
ରଖନ୍ତି ଗୃହେ ଅନ୍ନବସ୍ତ୍ର ଜଳ
ଉତ୍ପୀଡିତ ପୁରୀବାସୀ ଯାତ୍ରିଦଳ
ସାବଧାନେ ଲାଟ ଚଳିବ ଚହିଁ ।

୭

କିଲା ବାରବାଟୀ କରହେ ଲୋକନ
ପୂର୍ବେ ଇଂରାଜଙ୍କ ବୀର ସୈନ୍ୟଗଣ
ମହାରାଷ୍ଟ୍ର ସେନା ରଣେ ନିପାତନ
କଲେ ଉଡାଇଲେ ରଙ୍ଗକେତନ ।
ଏହି ଦୁର୍ଗେ ଆଜି ତବ ଦରବାର
ଉଚ୍ଛୁଳେ ସୌଭାଗ୍ୟ-ରୂପ ପାରାବାର
ସେନାନୀଙ୍କ ଦର୍ପ ଅସ୍ତ୍ର ଝନତ୍କାର
ଦ୍ରବୀଭୂତ କରେ ଶତ୍ରୁର ମନ ।

—o—

## ତୃତୀୟ ସ୍ତୋକ । ଆତ୍ମ ନିବେଦନ

୮

କହିବି ଦି କଥା ଶୁଣିବ ଆପଣ
ନାହିଁ ତହିଁ କିଛି ବଡ଼ାଣି ଆପଣ
ଅନୁଭବେ ଯାହା ହୁଏ ସଂଘଟନ
ସେହିଟି ପ୍ରକୃତ ପ୍ରାର୍ଥନାବାଣୀ ।
ସହଜରେ ଦିଅ ସୁବିଚାର ଦାନ
ସଂଶୋଧନ କର ଏ ଦଣ୍ଡ ବିଧାନ
ସୁମାର୍ଜ୍ଜିତ ହେଉ କାରାରୀତି ମାନ
ଦେଶୀ ମାପେ ଦେଶ ରଖ ପ୍ରମାଣି ।

୯

ଅସଂଖ୍ୟ ଆଇନ୍ ବନ୍ଧା ବିଧିମାନ
ମଧ୍ୟେ ପଡ଼ି ଆମ୍ଭେ ହେଉଁ ହତଜ୍ଞାନ
ଉତ୍କଳର ପାଁଇ ସ୍ୱତନ୍ତ୍ର ବିଧାନ
କରିଦିଅଲାଟ ପ୍ରାର୍ଥନା ଏତେ ।
ଗଞ୍ଜାମ ସମ୍ବଲପୁରକୁ ଏଥର
କଟକ ସଙ୍ଗରେ ଆଣି ଯୋଗକର
ରେଳଛକପାତ ହେଲାତ ଦେଶର
ଆଉ କାହିଁ ପାଇଁ ବିଳମ୍ବ କେତେ ।

୧୦

ଖାସ ମାହାଲର ଏ ଯେ କରଟାଣ
ନଗର ଉନ୍ନତି ପକ୍ଷେ ବଜ୍ରବାଣ
ଷୋଳକଳାପୁରା ହୋଇଛି ପ୍ରମାଣ
କର ଜମାବନ୍ଦିଖାତା ଦର୍ଶନ ।
ଏତେ ଆଧିକ୍ୟରେ କଷ୍ଟ କର ଦାନ
କିପରି ଚଳିବେ ଦୀନହୀନ ଜନ
ଆପଣ ଧାର୍ମିକ ବିବେକୀ ରାଜନ
କରିଦିଅ କିଛି କର କର୍ତ୍ତନ ।

୧୧

ଚୌକିଦାରୀ ପ୍ରଥା ଥିଲାଯେଉଁପରି
ସେହିଟି ସୁପ୍ରଥା ମନେଅଛୁଁ ଧରି
ଦଣ୍ଡୁଆସି ଭୂମି ରଖ ସେହିପରି
କରଛାଡ଼ି କର୍ତ୍ତା କରୁଣାଧର ।
କର ସଂଗ୍ରହରେ ବିଷମ କାରଣ
ଘରେ ଘରେ ହେବ ଅଗ୍ନି ଉଦ୍ଗିରଣ
କେତେ ଲାଭ ଅବା ପାଇବେ ରାଜନ
ଅନ୍ୟଥାଟି ପୂର୍ବପ୍ରଥା ନକର ।

୧୨

କୃଷିପ୍ରଧାନ ଏ ଦେଶ ନବଲାଟ
ଜଳରକ୍ଷା ପାଇଁ କର ଭଲ ବାଟ
ପଙ୍କେ ନିମଜ୍ଜିତ ସରକୋର ପାଟ
ଅକରୁଣା କଲେ ବାରିବାହକ ।
ପଡ଼ିଯାଏ ଦେଶେ ହାହାକାର ଡାକ
ଶୂନ୍ୟଧାନ୍ୟାଗାର କିବା କରିବାକ
ଭାବି କୃଷକର ବହେ ଲୋତକ ।

୧୩

ଭାରତେଶ୍ୱରିଙ୍କି କହିବ ଆପଣ
ବଡ଼ ନିରୀହଟି ଉତ୍କଳୀୟଗଣ
କରନ୍ତି ସର୍ବଦା ଶାକାନ୍ନ ଭୋଜନ
ତେଣୁ ରାଜଭକ୍ତି ସ୍ୱଭାବୋଚିତ
ତାମସିକ ନୁହେ ତାହାଙ୍କ ସ୍ୱଭାବ
ରଖିଥିବ ତାଙ୍କ ପ୍ରତି ଦୟାଭାବ
ଦେଉଥିବ ରାଜଦ୍ୱାରେ ବେଳେ ଠାବେ
କାଳେ କାଳେ ଥିବ ସନ୍ତୋଷ ଚିତ୍ତ ।

ଶ୍ରୀଗୋବିନ୍ଦ ରଥ
କଟକ

—୦—

# ପରିଶିଷ୍ଟ

## ସାର୍ ଟମ୍‌ସନ୍‌ଙ୍କ ଓଡ଼ିଶା ଆଗମନରେ ନିର୍ଦ୍ଧାରିତ କାର୍ଯ୍ୟାବଳୀ (୧୮୮୫)

ଆମ୍ଭମାନଙ୍କ ଛୋଟଲାଟ ସାହେବ ଆଗାମୀ ୧୬ ତାରିଖରେ କଲିକତା ଛାଡ଼ି ୧୭ ତାରିଖରେ ବତୀଘର ଓ ୧୮ ତାରିଖରେ କଟକରେ ବିରାଜମାନ ହେବେ। ୧୯।୨୦।୨୧ ତାରିଖରେ କଟକରେ ରହଣି, ୨୨ ତାରିଖରେ କଟକରୁ ଯାତ୍ରା କରି ୨୩ ତାରିଖରେ ପୁରୀରେ ବିରାଜମାନ ହେବେ। ୨୪ ତାରିଖରେ ପୁରୀରେ ରହଣି, ୨୫ ତାରିଖରେ ପୁରୀରୁ ଲେଉଟି ୨୬ ତାରିଖରେ କଟକରେ ପହଞ୍ଚିବେ, ସେହିଦିନ ସନ୍ଧ୍ୟା ସମୟରେ କଟକରୁ ଯାତ୍ରାକରି ଭଦରକ ହୋଇ ୨୭ ତାରିଖରେ ଚାନ୍ଦବାଲି, ସେଠାରୁ ୨୮ ତାରିଖରେ ବାଲେଶ୍ୱରରେ ବିରାଜମାନ, ୨୯ ତାରିଖରେ ଏଠାରେ ରହଣି। ୩୦ ତାରିଖରେ ବାଲେଶ୍ୱରରୁ ଯାତ୍ରା, ଡିସେମ୍ବର ୧ ତାରିଖରେ ବାରିପଦାରେ ବିରାଜମାନ। ଡିସେମ୍ବର ୨ ଓ ୩ ତାରିଖରେ ବାରିପଦାରେ ଅବସ୍ଥି ୪ ତାରିଖରେ ବାଲେଶ୍ୱର ଏବଂ ୫ ତାରିଖରେ ବାଲେଶ୍ୱରରୁ କଲିକତାକୁ ଯାତ୍ରା କରିବେ।

କଟକରେ ଗୋଟିଏ ଦରବାର ହେବ। ଓଡ଼ିଶ୍ୟାରେ ରାଜା, ବଡ଼ ୨ ଜମିଦାର, ମ୍ୟୁନିସିପାଲିଟିର କମିଶନର୍‌ ଏବଂ ପ୍ରଧାନ ୨ ସରକାରୀ କର୍ମଚାରୀ ପ୍ରଭୃତି ଆହୂତ ହୋଇଅଛନ୍ତି। (ଆମ୍ଭେମାନେ ମଧ ନିମନ୍ତ୍ରଣର କାର୍ଡ଼ ପାଇଅଛୁଁ; ସେଥିନିମନ୍ତେ କମିଶନର ମହୋଦୟଙ୍କୁ ଧନ୍ୟବାଦ ଦେଉଅଛୁଁ।) ଶ୍ରୀଯୁତଙ୍କ ଅଭ୍ୟର୍ଥନା ନିମନ୍ତେ ଆଜିକାଲି କଟକରେ ଭାରୀ ଆୟୋଜନ ହେଉଥିବ। ଦରବାର ପରେ କଟକରେ କି କି କାର୍ଯ୍ୟ ହେବ ଅବଧି ତାହା ପ୍ରକାଶ ପାଇନାହିଁ। ଶ୍ରୀଯୁତ କେନାଲ ବାଟେ ଆଗମନ କରି ଚାନ୍ଦିପୁର ସଡ଼କ ନିକଟରେ ଷ୍ଟିମରରୁ ଉତୁରି ନଗର ମଧ୍ୟକୁ ଆସିବେ

ଏଥିମଧ୍ୟରେ ଆମ୍ଭମାନଙ୍କ ମାଜିଷ୍ଟ୍ରେଟ ସାହେବ, ଏ ନଗରବାସୀ ଭଦ୍ର ଲୋକମାନଙ୍କୁ ଘେନି ଡାକ୍ତର ସାହେବଙ୍କ ହତାମଧ୍ୟରେ ଗୋଟିଏ ସଭା କରିଥିଲେ। କିରୂପେ ଶ୍ରୀଯୁତଙ୍କର ଅର୍ଭ୍ୟଥନା କରାଯିବ ଓ ଶ୍ରୀଯୁତ କେଉଁ ୨ ବାଟେ ମାଜିଷ୍ଟ୍ରେଟ ସାହେବଙ୍କ କୋଠିକୁ ଆସିବେ ଇତ୍ୟାଦି ବିଷୟ ସ୍ଥିର କରିବ। ସଭାର ଉଦ୍ଦେଶ୍ୟ ଥିଲା। ସଭାରେ ସ୍ଥିର ହେଲା ଯେ, ଘେଷାଣା ଦ୍ୱାରା (ଘୋଷଣା ଦ୍ୱାରା) ଶ୍ରୀଯୁତଙ୍କ ଆଗମନ

ନଗରବାସୀମାନଙ୍କୁ ଜଣାଇ ଦିଆଯିବ ଏବଂ ନଗରବାସିମାନେ ରାଜଭକ୍ତିର ପ୍ରମାଣ ଦେଖାଇବା ନିମନ୍ତେ ଗୃହ ପରିଷ୍କାର ଏବଂ ଆଲୁଅ ପ୍ରଦାନ କରିବେ । ଶ୍ରୀଯୁତଙ୍କୁ ଯେଉଁ ଅଭିନନ୍ଦନ ପତ୍ର ଦିଆଯିବ ଓ ଯାହା ସବ୍ କମିଟି ରଚନା କରିଥିଲେ ତାହା ଛାପାହେବା ପୂର୍ବରୁ ସେଥିର ମସାବିଦା ସଭାରେ କୁମାର ବୈକୁଣ୍ଠନାଥ ଦେଙ୍କ ଦ୍ୱାରା ପଠିତ ଓ ସମସ୍ତ ସଭ୍ୟଙ୍କର ମନୋନୀତ ହେଲା । ସଭାରେ ସ୍ଥିର ହେଲା ପରମିଟ୍ କୋଠି ପଡ଼ିଆରେ ଶ୍ରୀଯୁତଙ୍କର ଅଭ୍ୟର୍ଥନା କରାଯିବ । ମ୍ୟୁନିସିପାଲିଟି ପକ୍ଷରୁ ଚେୟାରମେନ ଇଂରେଜୀରେ ଏବଂ କୁମାର ବୈକୁଣ୍ଠନାଥ ଦେ ଓଡ଼ିଆ ଭାଷାରେ ଅଭିନନ୍ଦନ ପତ୍ର ଶ୍ରୀଯୁତଙ୍କ ଛାମୁରେ ପାଠ କରିବେ ।

ଶୁଣା ଯାଉଅଛି, ଶ୍ରୀମତୀ ଟମଶନ୍ ଓ କୁମାରୀ ଟମଶନ୍ ଶ୍ରୀଯୁତଙ୍କ ସଙ୍ଗରେ ନଗରକୁ ନ ଆସି ଚାନ୍ଦବାଲିଠାରୁ ଷ୍ଟୀମରରେ ଗମନ କରି ବଳରାମ ଗଡ଼ୀ କାରାର ବାହାର ଦଶୟାରେ ଅବସ୍ଥିତି କରୁଥିବେ ଶ୍ରୀଯୁତ ଏ ନଗରରୁ ଯାତ୍ରାକରି ସହଧର୍ମିଣୀ ଏବଂ ଆତ୍ମଜାଙ୍କୁ ଷ୍ଟୀମରରେ ଭେଟିବେ । ଆଗାମୀ ପତ୍ରିକାରେ ଅନ୍ୟାନ୍ୟ ବିଶୟ ପାଠକମାନଙ୍କୁ ଜଣାଇବୁଁ ।



## ଛୋଟଲାଟଙ୍କ ଓଡ଼ିଶା ଭ୍ରମଣ
## (୧୮୯୨ ସାଲ)

ବଙ୍ଗ ପ୍ରଦେଶର ଲେଫ୍‌ନାଣ୍ଟ ଗଭର୍ଣ୍ଣର ମାନ୍ୟବର ସାର୍ ଚାର୍ଲସ୍ ଇଲିୟଟ ବାହାଦୂରଙ୍କ ଓଡ଼ିଶା ଭ୍ରମଣର ଯେଉଁ ଅନୁଷ୍ଠାନ ପତ୍ର ବାହାରିଅଛି ତହିଁର ବିବରଣ ନିମ୍ନେ ପ୍ରକାଶିତ ହେଲା । ଯଥା ;–

ମାନ୍ୟବର ମହୋଦୟ ଚଳିତ ମାସ ତା ୯ ରିଖ ମଙ୍ଗଳବାର କଲିକତାରୁ ଯାତ୍ରା କରି ତା୧୦ରିଖ ବୁଧବାର ନଳିକୂଳଠାରେ ପହୁଞ୍ଚି ସେଠାରୁ ସକାଳ ଘ୧୦ଣ୍ଟା ସମୟରେ ବଗିରେ ବାଲେଶ୍ୱରକୁ ଆସିବେ ଓ ସେହିଦିନ ଅପରାହ୍ଣ ଘ୪ଣ୍ଟା ସମୟରେ ନୂତନ ମିଉନିସିପଲ କଚେରୀ ପ୍ରତିଷ୍ଠା କରିବେ ଓ ସେଠାରେ ଅଭିନନ୍ଦନ ପତ୍ର ମାନ ଗ୍ରହଣ କରିବେ ।

**ତା୧୧ରିଖ ଗୁରୁବାର**– ବାଲେଶ୍ୱରରେ ସକାଳ ଘ୬/୮ଣ୍ଟା ମଧ୍ୟରେ ଜେଲ ଓ ହାସପାତାଳ ଏବଂ ଘ୮/୧୧ଣ୍ଟାରେ କଲେକ୍ଟରୀ କଚେରୀ ଦେଖିବେ । ଅପରାହ୍ଣ

ଘ୨ଣ୍ଟାରେ ଦେଶୀୟ ଭଦ୍ରଲୋକଙ୍କ ସାକ୍ଷାତ୍ ଗ୍ରହଣ, ଘ୩ଣ୍ଟାରେ ପୁଣି କଲେକ୍ଟରୀ କଚେରୀ ତଦାରଖ ଓ ଘ୫ଣ୍ଟା ବେଳେ ରାଜା ବୈକୁଣ୍ଠନାଥ ଦେଙ୍କ ଆମନ୍ତ୍ରଣ ରକ୍ଷା କରିବେ ।

**ତା୧୨ରିଖ ଶୁକ୍ରବାର–** ବାଲେଶ୍ୱରରେ ସକାଳେ ଘ୬/୮ଣ୍ଟାରେ ପାତ୍ର ହାସପାତାଳ ପୁଲୀସ ନିବାସ, ବ୍ୟାପ୍‌ଟିଷ୍ଟ ମିସନ ଓ ଜିଲ୍ଲା ସ୍କୁଲ ଓ ଘ୮/୧୧ଣ୍ଟାରେ ମୁନ୍‌ସଫି ଓ ବାରିକ ମାଷ୍ଟୁରୀ କଚେରୀମାନ ଦେଖିବେ । ଅପରାହ୍ଣ ଘ୩ଣ୍ଟା ସମୟରେ ଡିଷ୍ଟ୍ରିକ୍ଟ୍ ବୋରଡର ମେମ୍ବରଙ୍କ ସହିତ ସାକ୍ଷାତ ଏବଂ ଘ୪ଣ୍ଟା ବେଳେ ରାଜବାଡ଼ି, ଡଚ୍ ଓ ଡେନିସ୍ କାରଖାନାମାନ ଏବଂ ପୁରୁଣା କବରସ୍ଥାନ ଇତ୍ୟାଦି ଭ୍ରମଣ କରିବେ ।

**ତା୧୩ରିଖ ଶନିବାର–** ସକାଳ ଘ୭ଣ୍ଟା ବେଳେ ନୀଳଗିରିକୁ ଓ ସେଠାରୁ ଅପରାହ୍ଣରେ ସୋରୋକୁ ଯାତ୍ରା କରିବେ ।

**ତା୧୪ରିଖ ରବିବାର–** ସୋରୋରେ ସକାଳ ବେଳେ ନୂତନ ଯାତ୍ରୀ-ଡାକ୍ତରଖାନା ପ୍ରତିଷ୍ଠା କରି ଅପରାହ୍ଣ ଘ୩ଣ୍ଟା ସମୟରେ ଯାତ୍ରା କରି ଘ୭ଣ୍ଟା ସମୟରେ ଭଦରଖଠାରେ ପହଞ୍ଚିବେ ।

**ତା୧୫ରିଖ ସୋମବାର–** ଭଦ୍ରଖରେ ସକାଳବେଳେ ଘ୬/୮ଣ୍ଟା ପର୍ଯ୍ୟନ୍ତ ଜେଲ୍ ଓ ଡାକ୍ତରଖାନା ଓ ଘ୧୧ଣ୍ଟା ପର୍ଯ୍ୟନ୍ତ ସବଡିଭିଜନ କଚେରୀ ଦେଖିବେ । ଅପରାହ୍ଣ ଘ୨ଣ୍ଟା ବେଳେ ଦେଶୀୟ ଭଦ୍ରଲୋକକୁ ସାକ୍ଷାତ୍ ଦେବେ ଏବଂ ଟା୯ଣ୍ଟା ବେଳେ ନୌକାରେ ଯାଜପୁରକୁ ଯାତ୍ରା କରିବେ ।

**ତା୧୬ରିଖ ମଙ୍ଗଳବାର–** ଯାଜପୁରରେ ସକାଳେ ପହୁଞ୍ଚି ଘ୧୧ଣ୍ଟା ପର୍ଯ୍ୟନ୍ତ ଜରୀବ ଓ ବନ୍ଦୋବସ୍ତ କଚେରୀମାନ ଓ ଭୋଜନ ଉତ୍ତାରୁ ସବଡିଭିଜନ ଓ ମୁନସଫି କଚେରୀମାନ ଦେଖିବେ ଓ ଅଭିନନ୍ଦନ ପତ୍ର ଗ୍ରହଣ କରିବେ ଘ୪ଣ୍ଟା ବେଳେ ପୁରାତନ କିର୍ତ୍ତୀମାନ ଦେଖି ଘ୭ଣ୍ଟା ସମୟରେ ସେଠାରୁ ଯାତ୍ରା କରିବେ ।

**ତା୧୭ରିଖ ବୁଧବାର–** ଲୁଣଟିକରିରେ ସକାଳେ ପହୁଞ୍ଚି ଜରୀବ ଓ ବନ୍ଦୋବସ୍ତ କାର୍ଯ୍ୟ ଦେଖି ଘ୯ଣ୍ଟା ବେଳେ ଯୋବରାରେ ଉପସ୍ଥିତ ହେବେ । ଏଠାରେ କେବଳ ହାକିମମାନେ ଭେଟିବେ ଏବଂ ସମ୍ମାନାର୍ଥେ ଭଲେଣ୍ଟିୟର ଦଳ ପରେଟ୍ କରିବେ ।

କଟକରେ ଅପରାହ୍ନ ଘ୨ଣ୍ଟା ବେଳେ ଦେଶୀୟ ଭଦ୍ରଲୋକକୁ ସାକ୍ଷାତ ଦେବେ ଏବଂ ଘ୩ଣ୍ଟା ବେଳେ କଲେକ୍ଟରୀ କଚେରୀ ଦେଖିବେ ।

**ତା୧୮ରିଖ ଗୁରୁବାର–** କଟକରେ ସକାଳ ଘ୬/୮ଣ୍ଟା ପର୍ଯ୍ୟନ୍ତ ଜେଲ୍, ଜେନେରଲ୍ ହାସପାତାଳ, ସଦର ଖାଂଟି ଘ୮/୧୧ଣ୍ଟା ପର୍ଯ୍ୟନ୍ତ ଜଜ୍ଙ୍କ କଚେରୀ ଦେଖିବେ । ଅପରାହ୍ନ ଘ୩ଣ୍ଟାରେ କଲେକ୍ଟରୀ କଚେରୀ ଦର୍ଶନ, ଘ୪ଣ୍ଟାରେ ଡିଷ୍ଟ୍ରିକ୍ଟ୍ ବୋରଡ ସଙ୍ଗେ ସାକ୍ଷାତ ଏବଂ ଘ୫ଣ୍ଟାରେ ଜଜ୍ ସାହେବଙ୍କ ଘରଠାରେ ବୈକାଳିକ ବୈଠକ ହେବ ।

**ତା୧୯ରିଖ ଶୁକ୍ରବାର–** କଟକରେ ସକାଳ ଘ୧୦ଣ୍ଟା ପର୍ଯ୍ୟନ୍ତ ଲେଡି ଟାମସନ୍ ଚିକିତ୍ସାଳୟ ଓ ସୁପ୍ରେଣ୍ଟେଣ୍ଡିଂ ଇଞ୍ଜିନୀୟରଙ୍କ କଚେରୀ ଦର୍ଶନ କରିବେ ।

**ତା୨୦ରିଖ ଶନିବାର–** ସକାଳେ କଟକରୁ ଯାତ୍ରା କରି ଖଣ୍ଡଗିରି ଭୁବନେଶ୍ୱର ଭ୍ରମଣ ପୂର୍ବକ ସାୟଂକାଳରେ ଖୋରଧାକୁ ବିରାଜମାନ ହେବେ ।

**ତା୨୧ରିଖ ରବିବାର–** ଖୋରଧାରେ ସକାଳେ ଜେଲ୍, ଡାକ୍ତରଖାନା, ସବରେଜଷ୍ଟର ମହକୁମା ସ୍କୁଲ ଓ ଜଙ୍ଗଲ କଚେରୀ ଦେଖିବେ ଏବଂ ସରବରାକାରମାନଙ୍କ ଅଭିନନ୍ଦନ ପତ୍ର ଗ୍ରହଣ କରିବେ । ଅପରାହ୍ନରେ ସବଡିଭିଜନ କଚେରୀ ଏବଂ ଦକ୍ଷିଣରେଳ ବାଟ ସକାଶେ ଭୂମିକ୍ରୟ ହେବାର ମହକୁମା ତଦାରଖ କରିବେ ।

**ତା୨୨ରିଖ ସୋମବାର–** ଖୋରଧାରୁ ପ୍ରସ୍ଥାନ କରି କଣ୍ଟିଠାରେ ରେଡିସ ସାହେବଙ୍କ କାର୍ଯ୍ୟ ଦେଖିବେ ଏବଂ ଅପରାହ୍ନରେ ପିପିଲିରେ ପହୁଞ୍ଚିବେ ଓ ବାଟରେ ନେଥାନ ସାହେବଙ୍କ କାର୍ଯ୍ୟ ଦେଖିବେ ।

**ତା୨୩ରିଖ ମଙ୍ଗଳବାର–** ପିପିଲିରୁ ଯାତ୍ରା କରି ବାଟରେ ସୁବିଧା ହେଲେ ବନ୍ଦୋବସ୍ତ କାର୍ଯ୍ୟ ଦେଖି ମଧ୍ୟାହ୍ନରେ ପୁରୀରେ ପହୁଞ୍ଚିବେ ।

**ତା୨୪ରିଖ ବୁଧବାର–** ପୁରୀରେ ସକାଳ ଘ୬/୮ଣ୍ଟା ମଧ୍ୟରେ ମନ୍ଦିର ଓ ମିଉନିସିପାଲିଟି ଦର୍ଶନ ଏବଂ ଅଭିନନ୍ଦନପତ୍ର ଗ୍ରହଣ କରିବେ । ଘ୮/୧୧ଣ୍ଟା ପର୍ଯ୍ୟନ୍ତ କଲେକ୍ଟରୀ କଚେରୀ ତଦାରଖ । ଅପରାହ୍ନ ଘ୨ଣ୍ଟାରେ ଦେଶୀୟ ଭଦ୍ରଲୋକଙ୍କୁ ସାକ୍ଷାତ ହେବେ ଓ ଘ୩ଣ୍ଟା ବେଳେ କଚେରୀ ଦେଖି ୪ଘଣ୍ଟା ବେଳେ ଡିଷ୍ଟ୍ରିକ୍ଟ ବୋରଡ଼କୁ ଭେଟିବେ ।

**ତା୨୫ରିଖ ଗୁରୁବାର—** ପୁରୀରେ ସକାଳ ଘ୬/୮ଣ୍ଟା ପର୍ଯ୍ୟନ୍ତ ଜେଲ୍‌ଖାନା, ସଦରଭାଟି ଏବଂ ସ୍କୁଲ ଓ ଘ୮/୧୧ଣ୍ଟା ପର୍ଯ୍ୟନ୍ତ କଚେରୀମାନ ତଦାରଖ ହେବ । ଏହିଦିନ ଦୁଇ ପହର ବେଳେ ପୋତାରୋହଣ କରି ତା୨୬ରିଖ ଶୁକ୍ରବାର କଲିକତାରେ ପ୍ରବେଶ ହେବେ ।

କଲିକତାରୁ ମାନ୍ୟବର ମହୋଦୟଙ୍କ ସଙ୍ଗେ ରେବିନ୍ୟୁ ବୋରଡ଼ର ମେମ୍ବର ସାର୍ ହେନେରୀ ହାରିସନ, ପ୍ରଧାନ ସେକ୍ରେଟରୀ ମାନ୍ୟବର ଏଚ୍, ଯେ, ଏସ୍, କଟକ ସେକ୍ରେଟରୀ ସି.ଇ. ବକଲାଣ୍ଡ ଏବଂ ପ୍ରାଇଭେଟ୍ ସେକ୍ରେଟରୀ କପ୍ତାନ କରୀ ସାହେବମାନେ ଆସି ଏକ ସଙ୍ଗରେ ପ୍ରସ୍ଥାନ କରିବେ । ଶ୍ରୀଯୁକ୍ତ କମିଶ୍ନର ସାହେବ ବାଲେଶ୍ୱରଠାରୁ ପୁରୀ ପର୍ଯ୍ୟନ୍ତ ଏବଂ ଜିଲ୍ଲା କଲେକ୍ଟରମାନେ ଆପଣା ଏଲାକା ମଧ୍ୟରେ ମହୋଦୟଙ୍କ ଗହଣରେ ରହିବେ । ଏପର ସୁପ୍ରଣ୍ଟେଣ୍ଟିଂ ଇଞ୍ଜିନୀୟର କର୍ଣ୍ଣେଲ ମାକାର୍ଥର ବାଲେଶ୍ୱର ପର୍ଯ୍ୟନ୍ତ ଏବଂ ଶ୍ରୀଯୁକ୍ତ ଅଡଲିଂ ସାହେବ କଟକ ପର୍ଯ୍ୟନ୍ତ ଆସିବେ । ଫିନୂକେନ୍ ସାହେବ କଟକରୁ ପୁରୀ ପର୍ଯ୍ୟନ୍ତ ସଙ୍ଗୀ ହେବେ ।

ଉପରଲିଖିତ ବିବରଣରୁ ପାଠକମାନେ ଜାଣିବେ ଯେ ଆମ୍ଭମାନଙ୍କର ଛୋଟଲାଟ ବାହାଦୂରଙ୍କର ଯେମନ୍ତ ବିସ୍ତାରିତ ପରିଦର୍ଶନ କରିବାକୁ ସଂକଳ୍ପ କରିଅଛନ୍ତି ଏପରି ଆଉ କାହାରି ଅମଳରେ ହୋଇନାହିଁ । ସମସ୍ତ ମହକୁମାର କାର୍ଯ୍ୟ ପୁଙ୍ଖାନୁପୁଙ୍ଖ ଦେଖିବା ତାହାଙ୍କର ଅଭିପ୍ରାୟ ଏବଂ ଏଥିପାଇଁ ଯଥୋଚିତ ପରିକ୍ରମ କରିବାକୁ ଆଦୌ କାତର ନୁହନ୍ତି କାରଣ ଯେପରି ସମୟ ଖଞ୍ଜା ହୋଇଅଛି ତହିଁରେ ବିଶ୍ରାମର ଅବକାଶ ଆଦୌ ନାହିଁ । ଏମନ୍ତ ଉଚ୍ଚପଦସ୍ଥ ଲୋକର ଏପରି କର୍ତ୍ତବ୍ୟପରାୟଣତା ବିଶେଷ ପ୍ରଶଂସାର ବିଷୟ ବୋଲିବାକୁ ହେବ । ବନ୍ଦୋବସ୍ତ ଓ ଜରୀବ କାର୍ଯ୍ୟ ପ୍ରତି ତାହାଙ୍କର ବିଶେଷ ମନୋଯୋଗ ଥିବାରୁ ସେ କାର୍ଯ୍ୟମାନ କିପରି ହେଉଅଛି ତାହା ପରିଦର୍ଶନ କରିବାର ବନ୍ଦୋବସ୍ତ କରିଅଛନ୍ତି ଏବଂ ବୋଲିବା ବାହୁଲ୍ୟ ଯେ ତଦ୍ୱାରା ଏ ସମ୍ପର୍କରେ ଲୋକଙ୍କ ଦୁଃଖ ଶୁଣିବାକୁ ଶେଷ ସୁବିଧା ପ୍ରଦାନ କରିଅଛନ୍ତି । ଆମ୍ଭେମାନେ ଏକାନ୍ତ ଆଶା କରୁ ଯେ ଲୋକମାନେ ଏ ସୁବିଧା ହରାଇବେ ନାହିଁ ।



## • ସାର୍ ଉଡବରନ୍ ସାହେବଙ୍କ ଓଡ଼ିଶା ଆଗମନର ଅନୁଷ୍ଠାନ ପତ୍ର – ୧୮୯୮ ମସିହା

ବଙ୍ଗ ପ୍ରଦେଶର ଲେଫ୍ଟନଣ୍ଟ ଗଭର୍ଣ୍ଣର ମାନ୍ୟବର ସାର ଉଡବରନଙ୍କର ଓଡ଼ିଶା ଭ୍ରମଣର ଅନୁଷ୍ଠାନ ପତ୍ର ବାହାରିଅଛି । ମାନ୍ୟବର ମହୋଦୟ ସ୍ୱପତ୍ନୀ ଓ କନ୍ୟା ସହିତ ଆସନ୍ତା ଡିସେମ୍ବର ତା ୨ ରିଖ ସକାଳ ଘ୬ଣ୍ଟା ବେଳେ କଲିକତାରେ ଗାଇଡ ନାମକ ଜାହାଜରେ ଆହୋରଣ (ଆରୋହଣ) କରି ଶନିବାର ସକାଳ ଘ୮ଣ୍ଟା ବେଳେ ଧାମରାରେ ଏବଂ ସେଠାରୁ କେନାଲ ଜାହାଜରେ ଚଢ଼ି ରବିବାର ସକାଳ ଘ୭ଘଣ୍ଟା ବେଳେ କଟକ ନଗରରେ ପ୍ରବେଶ ହେବେ । ପ୍ରବେଶ ଗୋପନୀୟ ଅର୍ଥାତ୍ ବିନା ସମାରୋହରେ ହେବ । ଡିସମ୍ବର ତା୫/୬ରିଖରେ କଟକରେ ରହି ଶେଷଦିନ ମଙ୍ଗଳବାର ଦରବାର କରି ବୁଧବାର ଗୁରୁବାର ହାଇଲେଭଲ କେନାଲରେ ଭ୍ରମଣ କରିବେ । ତା୯ରିଖ ଶୁକ୍ରବାର ସକାଳ ଘ୭ଣ୍ଟା ବେଳେ କଟକରୁ ହାତିରେ ଓ ବଗିରେ ବାରଙ୍ଗରେ ପହଞ୍ଚି ଘ୧୨ଣ୍ଟା ବେଳେ ରେଲବାଟରେ ଭୁବନେଶ୍ୱରକୁ ବିରାଜମାନ ହେବେ ଏବଂ ଘ୧୦ରିଖ ଶନିବାର ଭୁବନେଶ୍ୱରଠାରୁ ରେଳରେ ଗମନ କରି ଅପରାହ୍ଣ ଘ୩/୪୦ ମିନିଟ୍‌ରେ ପୁରୀରେ ପହଞ୍ଚିବେ । ତା୧୧ରିଖରେ ପୁରୀରେ ଅବସ୍ଥାନ କରି ତା୧୨ରିଖ ସୋମବାର ପ୍ରାତଃକାଳରେ ଗାଇଡ ନାମକ ଜାହାଜରେ ପ୍ରସ୍ଥାନ କରିବେ ଏବଂ ତା୧୩ରିଖ ମଙ୍ଗଳବାର ଦିବା ଦୁଇପ୍ରହର ସମୟରେ କଲିକତାରେ ପହଞ୍ଚିବେ (।) କଲିକତାରେ ପ୍ରବେଶ ମଧ ଗୋପନୀୟ ହେବ । ରେବନ୍ୟୁ ସେକ୍ରଟରୀ ସ୍ଲାକ ସାହେବ ବାରିକମାଷ୍ଟରୀ ସେକ୍ରଟରୀ କର୍ଣ୍ଣଲ ମାକାର୍ଥର ଏବଂ ପ୍ରାଇଭେଟ୍ ସେକ୍ରଟରୀ ଗଏର ସାହେବମାନେ ମାନ୍ୟବରଙ୍କ ଗହନରେ ଆସିବେ ।

